## ପାରଳା ଅଧୀଶ୍ୱର ଶ୍ରୀ ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ନାରାୟଣ ଦେବ ଗଜପତି ମହାରାଜାଙ୍କ ଦିଗ୍ବିଜୟ ଉତ୍ସବ ଉପଲକ୍ଷେ ॥

ରାଗ ବଙ୍ଗଳାଶ୍ରୀ ।

ଥିଲି ନିଦ୍ରାଗତ        କୁମ୍ଭକର୍ଣ୍ଣବତ
ଦୀନ କୁଟୀରେ ମୋହର,
ସହସା ମୋ ମନେ        ଅଦ୍ଭୁତ ସ୍ୱପନେ
ଉତ୍କଳରୁ ହେଲା ଗୋଚର । ୧ ।

ବର୍ଣ୍ଣିବି କାହାରେ ?        ସେ ସ୍ୱପନ ଶିରୀ
ନାହିଁ ମୋର ସେହି ଶକ୍ତି,
ସ୍ୱପ୍ନ ହେଲେ ହିଁନା        କରନ୍ତୁ କଳ୍ପନା
କେତେକ ଭାଷ କଳ୍ପମଣ୍ଡ । ୨ ।

ଇନ୍ଦ୍ରଜାଲ ପରେ        ଉଦୟ ଅଚଳେ
କ୍ଷଣକେ ହୋଇଲା ଉଭା,
ପୂର୍ବ କୋଣ ଫୁଟି        ଜ୍ୟୋତି ମଧ୍ୟେ ଉଠି
ବସିଅଛି ଏକ ସଭା । ୩ ।

ସଭା ମଧ୍ୟ ଦେଶେ        ଅପୂର୍ବ ବେଶେ
ବିରାଜିତ ଦିବ୍ୟ ମୂର୍ତ୍ତି,
ହୃଷ୍ଟ ମୁଖା ସତୀ        ସେହି ଭାଗ୍ୟବତୀ
ଙ୍କ ଅନ୍ୟା ଅଟନ୍ତି ଉତ୍କଳ । ୪ ।

କଣ୍ଠେ ଶ୍ରୀଚୂଳେ ପୁଷ୍ପମାଳା ଦୋଳେ
ରଙ୍ଗେ ହୋଇଛନ୍ତି ଛନ୍ଦା,
ଓଡ଼ିଆ ସ୍ୱରୂପ ପିନ୍ଧି ଅନୁରୂପ
ବସନ ମାଣିଆବନ୍ଧୀ । ୫ ।

ଅଛେ କୃଷ୍ଣଚନ୍ଦ୍ର ପାରଳା ନରେନ୍ଦ୍ର
ଧୀର ବୀର ଚୂଡ଼ାମଣି,
ପାଳେଛନ୍ତି ବଳେ ଉଭୟ ଅମୃତେ
ଶାସ୍ତ୍ର, ଭକ୍ତି ଶୁଣାଗ୍ରଣୀ । ୬ ।

ବସନ୍ତ ଆଗମେ ଲଳିତ ପଞ୍ଚମେ
ଭାଷେ ଯଥା ପରଭୃତ,
ପ୍ରାଣ ମଣି ଧ୍ୱନି କି ଅବା ନର୍ତ୍ତକୀ
କଣ୍ଠରେ ଓଡ଼ିଆ ଦୂତ । ୭ ।

ଦେବୀ ଭାଷେ ବାଣୀ, "ଶୁଣ ଗୁଣମଣି;
ଜାହ୍ନବୀ କୁଳ ଚନ୍ଦ୍ରମା,
ତୁମ୍ଭ ବଂଶଧର ଭଗୀରଥ ବୀର
ଉଚିତ ତବ ଉପମା । ୮ ।

ସ୍ୱର୍ଗଲୋକୁ ଯାଇ ସୁରଧୁନୀ ଗଇ—
ପାଇଥିଲେ ସତ୍ୟକାଳେ,
ତବ ବାହୁବଳେ ସାଧିଲ ଉତ୍କଳେ
ଅସାଧ୍ୟ ଯାହା ଏକାଳେ । ୯ ।

ଏହି ଯୁଗେ କେହି    ଦେଶ ସେବା ପାଇଁ
  ନଯୋଜି ମନ ତୋଷିଲେ,
ଉଠନ୍ତୁ ଚଞ୍ଚଳ    ବାଳକ ସକଳ
  ଜନ୍ମ ଲଭି ଏ ଉତ୍କଳେ ! । ୧୦ ।

ବଢେ ହେଲ ବୀର    ଲଙ୍ଘି ପାରାବାର
  ଭୋଗେ ଯାତନା ଅଶେଷ,
ଜିଣି ଶଙ୍କଟଳ    ମଙ୍ଗଳେ ଫେରିଲ
  ଧନ୍ୟ ସମ୍ରାଟ ଅଦେଶ । ୧୧ ।

ତୁମ୍ଭର ପ୍ରଭାବେ    ସିନା ଏହି ହବେ
  ମୋର ଭଗିନୀ ଓଡ଼ିଶା,
ଉଲ୍ଲାସେ ସହାସେ    ରସିଲା ବିଳାସେ
  କଟାଇ ତିମିର ନିଶା । ୧୨ ।

ପଛନ୍ତୁ ଦେଇ    ଚନ୍ଦ୍ରାଇ ଦଅଇ
  ବେହୁଟି ମାତା ଭାରତ,
ଦକ୍ଷିଣେ ତ୍ରୈଲଙ୍ଗ,    ବାମ ଭାଗେ ବଙ୍ଗ
  ଶିର ଦଶେ ଅବନତ । ୧୩ ।

ଦେଖ ପୃଷ୍ଠ ଭାଗେ    ଆସୀନ ସଗର୍ବେ
  ମହାରାଷ୍ଟ୍ର, ଗୁଜରାଟ,
ପଞ୍ଜାବ ଭୂପାଳ,    ବିଦେହ, କୋଶଳ,
  ସିନ୍ଧୁ, ତାମିଲ, କର୍ଣ୍ଣାଟ" । ୧୪ ।

ସର୍ବେ ଭକ୍ତିଭରେ ଜନ୍ମମା ପଦ୍ମରେ
ଜଣାଇଲେ ନମସ୍କାର,
ଉଠି ରାଜରାଣୀ ଭାରତ ଜନନୀ
କନ୍ୟାଙ୍କୁ କଲେ ସତ୍କାର । ୧୫ ।

ଓଡ଼ିଶା ସୁନ୍ଦରୀ ମଧ୍ୟେ ବଢ଼େଇ କର
ଜଣାଇଲେ ସବୁକଥା,
"ଯାଉ ଭୂମି ଯାହା କେବଳ ନଷ୍ଟେ ଅନ୍ନା
ଅଛି ଠେକ ଅଛି ମଥା । ୧୬ ।

ବନ୍ୟା ପ୍ରପୀଡ଼ିତ ଦୁର୍ଭିକ୍ଷ ଜଡ଼ିତ
ବହୁ କାଳୁଁ ମୋ ସନ୍ତାନ,
କ୍ଷୁଧା ବାଧା ସହି ଉଠି ନ ପାରଇ
ଉଚ୍ଚ ଉନ୍ନତ ସୋପାନ । ୧୭ ।

ଅଶେଷ ଯତନ କଟାକ୍ଷ ପାତନ
କରନ୍ତେ, ଗୋ ରାଜରାଣି !
ବିଦ୍ୟା, ଯଶ, ଧନ, ସୁଗୁଣେ ମଣ୍ଡନ
ଅଚିରେ ହେବ ଉତ୍ତାଣି । ୧୮ ।

ବଚନ ଗାଙ୍କାରେ ଥିଲେ ଉତ୍କଳରେ
ଏକ ଭୂପ ଅଧିପତି,
ଅତି ଓଡ଼ିଆର ଶ୍ରାନ୍ତେ ନିହୂର
କୃଷ୍ଣଚନ୍ଦ୍ର ଗଜପତି । ୧୯ ।

ଯୋଗ୍ୟ ଉପହାର    ଦେଇନ୍ତୁ କୁମାର
ମନ୍ତ୍ରକୈ ଚାତ ଚନ୍ଦନ,
ସହୃଣ କଷଣ    ଉତ୍କଳ ମିଶ୍ରଣ
ନିସ୍ୱାର୍ଥେ ରଚଲ ରଣ । ୧୦ ।

ହେଲେହେଁ ବନ୍ଧୁ    ବହୁ କ୍ଲେଶ ସାଧ୍ୟ
ଅଟଇ ଏସନ ଧର୍ମ,
ହାୟ କେଉଁ ଭକ୍ତି    ପାଇ କେଉଁ ଶକ୍ତି
ରକ୍ଷା କଲ କ୍ଷତ୍ରେ ଧର୍ମ । ୧୧ ।

କି କହିବ ସୁଖ    ଦେଲେ ପୁଣି ଦୁଃଖ
ଅଦ୍ୟାପି ହୃଦର ଅନ୍ଧ,
ଥେନ୍ତେ ମୋର ସୁତ,    ଯେନ୍ତୁ ସମ୍ମୋହିତ
ସ୍ୱଜ, ମେଣ୍ଢା, ଉଡ୍ର, କଳ । ୧୨ ।

ଯାବତ ଜଗତେ    ବଙ୍ଗଜବେ ମର୍ତ୍ତ୍ୟେ
ଧନମଣି, ଦ୍ୱିଜରାଜ,
ତାବତ ଅମର    ଏ ଯଶ ତୁମ୍ଭର
ଘୋଷିବ ଜନ ସମାଜ । ୧୩ ।

ଭାରତ ବକ୍ଷରେ    ହିମାଦ୍ରି ଶିଖରେ
ଦୁର୍ଗ ପ୍ରାଚୀରେ, ଧ୍ୱଜାରେ
ହେଲାଣି ଖୋଦିତ    ସୁବର୍ଣ୍ଣେ ଲିଖିତ
ଛତି ହାସର ପୃଷ୍ଠାରେ । ୧୪ ।

"ସ୍ୱଦେଶ ଉଦ୍ଧାର    କହନ୍ତୁ ମୋର
    କୃଷ୍ଣଚନ୍ଦ୍ର ଯୋଗ୍ୟ ସୁତ ।
ଚେତନା ଲଭିଲ    ନୟନେ ଦେଖିଲ
    ବୃତ୍ତାନ୍ତ ଅଟେ ପ୍ରକୃତ ॥ ୧୫ ॥

ଉତନ୍ତ୍ର ଅନଳେ    ବଚନ୍ ଚତୁଳେ
    ଶୁଭିଲ୍ ଉଲ୍ଲାସ ରୋଳ,
ଶଙ୍ଖ ଘଣ୍ଟାଧ୍ୱନି    କମ୍ପାଏ ଅବନୀ
    କିବା ବାଦ୍ୟ କଲ୍ଲୋଳ? ॥ ୧୬ ॥

ଗୃହ ନିକେତନ    ବନ୍ଧୁଛି କେତନ
    ବ୍ରିଟିଶ ଭକ୍ତି ନିଶାଣ,
ଦ୍ୱାର ଅଲୋକିତ    ଦଶେ ତାରକିତ
    କି ସୁରପତି ବିମାନ? ॥ ୧୭ ॥

ଉଆସ ପ୍ରାଙ୍ଗଣେ    ଯୋଷା ପଶୁଗଣେ
    ଅଢସ—ବାଜୀ ଛୁଟନ୍ତି,
ଅନ୍ତରୀକ୍ଷ ଭେଦ    କୁଳୀଣ ଜନାଦୀ
    ଉଠନ୍ତି ଜ୍ୟୋତିଷ୍କ ପନ୍ତି ॥ ୧୮ ॥

ରମ୍ଭା ତରୁ ପରେ    ପୁଷ୍ପ ଗୁଚ୍ଛା—ଛରେ
    ରଚିତ ରମ୍ୟ ତୋରଣ,
ଘୋଷନ୍ତି ଆଶୀଷ,    ବର୍ଦ୍ଧନେ ଅପୂର୍ବ
    ଶୁଭ, ପାରଳା ଭୂଷଣ ॥ ୧୯ ॥

କରେ ମନ ଲୋଭା    ପୂର୍ଣ୍ଣ କୁମ୍ଭ ଶୋଭା
ପ୍ରତ୍ୟେକ ଦୁଆର ପାଶେ,
କାମିନୀ ସକଳ    ମାନସେ ଅକୁଳ
ଅବରୁ ଲପନ ବାସେ । ୩୦ ।

ଜଣେ ଇନ୍ଦୁ ମୁଖୀ    ଭାଷେ, "କହ ଦେଖି
ମିଶ୍ରଣ ଘୋଷଣା କଥା।
ବାଲ୍ୟ କାଳୁ ମୁହିଁ    ଭାବି ଭାବି ସହି
ଯାଉ ଥିଲି ମନେ ବ୍ୟଥା । ୩୧ ।

ସତେ କି ମିଳିଲା    ପୂର୍ଣ୍ଣାଙ୍ଗ ଦିଶିଲା
ମାତୃ ଭୂମି ଅବୟବ,
ଫେରିଲେ କି ଶତ୍ରୁ    ଶ୍ରୀହସ୍ତେ ବିଜୟ-
ପତାକା-ଶୋଭନା ଧ୍ୱଜ"? । ୩୨ ।

କହେ ବୁଢ଼ି ଆଇ    ଥରାଇ ଥରାଇ
ଲଉଡ଼ି, ଧବଳ ମଥା,
"ଛପି ଛପି ଥିଲି    ଭାଗ୍ୟରୁ ଶୁଣିଲି
ଜୀବନେ ମିଶ୍ରଣ କଥା । ୩୩ ।

ହୋଇଲା ଘୋଷଣା    ଉତ୍କଳ ମିଶ୍ରଣ
ଯାପିବି ଦିନ ହରଷେ,
ଜୀବନ ଏଥର    ଛାଡ଼ିବ ଜନର
ନାହିଁ ଭାବନା ମାନସେ" । ୩୪ ।

ଘଣ୍ଟ ଶୃଙ୍ଗାଟକେ        ରସାଳ ସ୍ତବକେ
ହୋଇଛି ତୋରଣ ବନ୍ଧା,
କାହିଁ କୃଷ୍ଣ ଲୀଳା        କାହିଁ ଡାକେ ଢୋଲା
ଲାଗିଛି ନର୍ତ୍ତନ ଧନ୍ଦା ॥ ୩୫ ॥

ରାଧାକାନ୍ତ ମଠେ        ଉଚ୍ଚ ଧ୍ୱଜା ଉଠେ
ଅଷ୍ଟ ପ୍ରହର କୀର୍ତ୍ତନ,
ହେମସ୍ୱାମୀ ଘରେ        କେହୁ ସ୍ତବ କରେ
ଚହିଁଛୁ ହୁଅ ରାଜନ ॥ ୩୬ ॥

ଜଗନ୍ନାଥ ପୀଠେ        ମହକାଳ ଉଠେ
ଅଖଣ୍ଡ ପ୍ରଦୀପ ଜାଳି,
ଝିଙ୍କ ଦାଣ୍ଡ ଦେଇ        ହରଷେ ଚାଲଇ
କୀର୍ତ୍ତନ ମାଲକୁ ମାଳ ॥ ୩୭ ॥

କୀର ଖଣ୍ଡାଇତ        ଦଳେ ସୁଶୋଭିତ
ମାଣିକେଶ୍ୱରୀ ଦେଉଳେ,
"ରଖ ମା, ମାଣିକା"!        ଦେଉଛନ୍ତି ଡକା
ବଳଏ ପ୍ରାଣ ଆକୁଳେ ॥ ୩୮ ॥

ସୁଜଳା, ସୁଫଳା,        ଶ୍ୟାମଳା ପାଗଳା-
ରାଜ୍ୟ ନଗ, ନଦୀ, ଘରେ,
ସହାସ ବଦନେ        ଯେ ଯାହା ଅସ୍ଥାନେ
ଉଭା ଥିଲେ ଉଲ୍ଲାସରେ ॥ ୩୯ ॥

ସ୍ୱଚ୍ଛ ପୂର୍ଣ୍ଣିମାର                ନଦୀ ବଂଶଧାର
ପାଖିଲା ଛବିର ହାତ,
“ମହେନ୍ଦ୍ର ତନୟା !                ମକୁଟରଜ ମାଥା
କହିଲେ ସୁସମାଙ୍କର ।୪୦।

ମହେନ୍ଦ୍ର ଅଟଳେ                ଉପର ଗହଳେ
ଲୁଗିଅଛୁ କାର ବାର,
କଦାପ ବପଣି                ଘଟେ ସାଙ୍କଳେଣି
କି ଓଡଣା ସରକାର”? ।୪୧।

କହେ ଗ୍ରାମ ସତ,                କୃଷକ ଭଣ୍ଡାର,
“ଷାଠା;ସାଗର ଗୋ ଶୁଣ
ଆମ୍ଭ ଦୁଇ ସନ୍ଧି                ମିଳନ ନସହି—
ପାରିଲ୍ଲ ବହି ଦାରୁଣ ।୪୨।

ଅମ୍ଭଙ୍କ ମିଳାଇ                ବେନାଲ ଖୋଲାଇ
ଦେବକି ହେଲେ ନରବର,
ଦଦାପ କାଳୀନ-                ଯାତନା ଖଣ୍ଡନ
ହୋଇ ଯିବ ନଗରର ।୪୩।

ଆମ୍ଭ ନୃପ ସୁତେ                ଅରେଗ୍ରହି ସୁପୋଢେ
ରମସ୍ୱାମୀ ଗହଣରେ,
ଫୁଟାଇ ହାଟେବଲୀ                ଉଚ ନାଦକେଳି
ବହିରନ୍ତୁ ଦେନ ହରେ” ୦୪

କାଞ୍ଚନ ନିର୍ମିତ ରତନ ଖଚିତ
ଆସନୁଁ ଦିବ୍ୟ ମୂରତି,
ବାଛି ଦେଲେ ଟାଡ ମଥାପରେ ଭଡ
ପ୍ରଣମିଲେ ଗଜପତି । ୪୫ ।

କଟଭପୁ ଦାଣୀ ଇଷ୍ଟ ଅଧିଷ୍ଠାଣୀ
ସ୍ୱରୂପେ ମାଣିକେଶ୍ୱରୀ,
ସାଦରେ ପୂଜିତା ସେହି ଆଦମାତା
ଢାଉଲାରେ ଅଦଭୂତ । ୪୬ ।

ସଭା ସଦ ବୃନ୍ଦ ଉଚ୍ଚେ ସେ ଗଦ୍‌ଗଦ-
ସ୍ୱରେ କଲେ ଆଶୀର୍ବାଦ,
"କୃଷ୍ଣଚନ୍ଦ୍ର ଜୟ' 'ଉତ୍କଳର ଜୟ"
ଶୁଭିଲା ହର୍ଷ ନିନାଦ । ୪୭ ।

ଅମ୍ବର ବନ୍ଧାଣି ଅସଂଖ୍ୟ ଅମର୍ତ୍ତ୍ୟ
କରୁଥିଲେ ନିରୀକ୍ଷଣ,
ଦେଖି ହୁଲ ହୁଲି ସୁମନ ଅଞ୍ଜଳି
ଧାଡରେ କଲେ ବର୍ଷଣ । ୪୮ ।

ଅଛୁ ମୋର ମନେ ପଡିଛୁ ପୂର୍ବେଣ
ଗୁରୁ ସୁଧର୍ମା ସୁଗୁଣ,
ଦେଖି ଏହି ସଭା ଛମଟି ଭଳବା
ଅଧିକ କେବା ନିଭନ । ୪୯ ।

ହରଷେ ଶ୍ଳୋକଙ୍କ — ବହୁଳ ଯେତେକ
ବିପଦନ ଯୋଷ୍ଠ ଅନନ୍ତ,
ଫୁଲ୍ଲରଜ ସ୍ଥଳ — ଯେମାନଦେ ମାଝ
ଉଠେ କଳ ସଙ୍କୀର୍ତ୍ତନ ।୫୦।

ଅସ ସବେ ମିଳି — ଦେଇ କର ତାଳି
ଗାଅ ହେ ଓଡ଼ିଶା ଜୟ,
ଜାଗ ପ୍ରାଣ ଦେଇ — ହେଉ ହେଉ ଜୟ
ସୌଭାଗ୍ୟ ଭାନୁ ଉଦୟ ।୫୧।

ଅଜ୍ଞ ଅଚେଷ୍ଟ ଭା — ଉଠନଗରସ୍ଥ
ଜନନୀ ସୁନ୍ଦର ମୂର୍ତ୍ତି
ସ୍ଥଳ ଅଭିମାନ — ଦେଖାଅ ସମ୍ମାନ:
ବାନ୍ଧ ହୃଦେ ନବ ସ୍ଫୂର୍ତ୍ତି ।୫୨।

ଉତ୍କଳ ମାତାର — ଖନଜ ଅପାର
ଖନନେ ଚେଷ୍ଟନ ଲାଗ:
ସ୍ୱର୍ଣ୍ଣ ପ୍ରସବିନୀ — ଅମୃତ ଜନନୀ
ଚରଣ କମଳେ ମାଗ ।୫୩।

ଜଗତ କରତା — ଗତି ମୁକ୍ତି ଦାତା
ସକଳ କଲୁଷ ହାରୀ,
ଅସନ କହିବ — ମାନସ ଠେକିବ
ଯେତେବେ ଅମ୍ଭ ଗୁହାରି ।୫୪।

ବଲ୍ଲଭେ ବଦାନ୍ୟ ପ୍ରଜା ସମୁଦାୟ
ପ୍ରଥମେ ଦେଲେ ଯେଉଁକାଳେ,
ସେ ମାଣିକ୍ୟଙ୍କ ଉପଦେଶ ଶିକ୍ଷା
ମନେ ଥିବ ଚିର କାଳେ । ୨୫ ।

“କ୍ଷୁଦ୍ର ଗୃହ କାର୍ଯ୍ୟ କର ରାଜ କାର୍ଯ୍ୟ
ଲଗ ମାତୃଭୂମି କର୍ମେ”
ଭାଷିଥିଲେ ଯାର ଏହି ଦନ୍ତୁ ଚିର
ରହିଛି ମୋର ମରମେ । ୨୬ ।

ବଚନ, କରଣ ପ୍ରଭେଦ ଦର୍ଶନ
ଘଟଇ ଅନେକ ଘଟେ,
ସମାନ ଉଭୟ ଅଟଇ ନିଶ୍ଚୟ
ଦେଖିଲି ଛମୁ ନିକଟେ । ୨୭ ।

ପ୍ରତିପକ୍ଷ ଦଳେ ରଚିଲେ କୌଶଳେ
ବୃଥା ଦୋଷ ଅରୋପଣ,
“ପାରଳା ନରେଶ ପାରଳା ସକାଶ
କଲେ ବଲ୍ଲଭେ ଗମନ” । ୨୮ ।

ସେହି ମିତ୍ର ଭେଦ- ନୀତି ଦେଲା ଖେଦ
ପ୍ରବୀଣ ଓଡ଼ିଆ ପ୍ରାଣେ,
ଶତ୍ରୁଙ୍କ ଘୋଷଣା, ସତ୍ୟ, ପ୍ରତାରଣା
ପ୍ରଭେଦ ଫୁଟିଲା ଜ୍ଞାନେ । ୨୯ ।।

ନିଷ୍କଳଙ୍କ ଚନ୍ଦ୍ର　　　ନଷ୍ଟେ କୃଷ୍ଣଚନ୍ଦ୍ର
　　ସନ୍ଦେହ ହୋଇଲା ଦୂର
ଦେଖ ପ୍ରମାଣିତ　　　ଯେଣୁ ଧର୍ମ୍ମଜିତ
　　ଓଡ଼ିଶାରେ ଜୟପୁର । ୬୦ ।

ମନେ ରଖ ଭାଇ　　　ଦେଶ ସେବା ପାଇଁ
　　ଘୃଣ୍ୟ ସିନା ନୀଚ କର୍ମ୍ମ
ସକଳେ ସମାନ　　　ଭାବେ ଯେ ସ୍ୱଜନ
　　ଧନ୍ୟ ତାଙ୍କ ରାଜଧର୍ମ୍ମ । ୬୧ ।

ଓଡ଼ିଆ ଶୋଣିତ　　　ହେବ ପ୍ରବାହିତ
　　ଯେତେ କାଳ ଶରୀରରେ
ଜପି ତବ ନାମ　　　ପାଇବେ ଆରାମ
　　ଜୟପୁର ରାଜ୍ୟ ନଗରେ । ୬୨ ।

ଓଡ଼ିଆ, ଗାଦବା,　　　ପରଜା, ଯାଦବା
　　କନ୍ଧ, ପାଣ, ଯେତେ ଜାତି,
ଯାବତ ଚନ୍ଦ୍ରାର୍କେ　　　ଗାଇବେ ସର୍ବଗେ
　　ଧନ୍ୟ ଧନ୍ୟ ତବ ଖ୍ୟାତି । ୬୩ ।

ଘୋଷନ୍ତି କୀରନ୍ତି　　　ସନ୍ଧ ସ୍ରୋତସ୍ୱତୀ
　　ମୃଦୁ କଳ କଳ ନାଦେ
ଭୂଧର, କନ୍ଦର　　　ହେଲେଣି ମୁଗ୍ଧ
　　ତବ ବିଜୟ ସମ୍ବାଦେ । ୬୪ ।

ଜୟପୁର ବାସୀ ସଙ୍ଗେ ସର୍ବେ ମିଳି
କଲେନ୍ତି ଅଭିବାଦନ
ବହୁ କାଳୁ ସତେ ନରେଶି ଚକ୍ଷେତ
ତୋପ୍ ଶୁଭାଗମନ । ୬୫ ।

ଗୁଣପୁର ଭଳି ମହୋଲ୍ଲାସେ ଯାଇ
ପୃଥ୍ୱୀ, ରଥ ରେଳ ପଥେ
'ପାରଳା ମଙ୍ଗଳ କର ଅଦମୂଳ
ଜଣାଅନ୍ତି ଯୋଡହସ୍ତେ । ୬୬ ।

ଜୟପୁର ମାତା ଚିର କୃତଜ୍ଞତା-
ପାଶେ ହୋଇଣ ବନ୍ଧନ
କଲେନ୍ତି ଅଶୀଷ ପାରଳା ନରେଶ
ଆୟୁଷ ହେଉ ବର୍ଦ୍ଧନ । ୬୭ ।

ଯଶସ୍ୱୀ ଅତୁଳ, ତୁମ୍ଭର ମାତୁଳ,
ବୀର ଜୟପୁର ପତି
ଶୁଣି ଦିଗ୍ବିଜୟ ବାରତା ହୃଦୟ
କଲେ ଆନନ୍ଦିତ ଅତି । ୬୮ ।

କରନ୍ତି ଭୂଷଣ ଉଦାର ବଚନ
"ତ୍ୟାଗ କର ମନୁଭୟ,
ଧନଂଭୁଜି ତେଜେନୟ । ପ୍ରବେଶି ଅଜେୟ
ସଂଗ୍ରାମେ ଲଭିଲେ ଜୟ । ୬୯ ।

ଦିବ୍ୟ ଗୀତାଶାସ୍ତ୍ର ଯେଉଁ ତ୍ୟାଗ ମନ୍ତ୍ର
ଶିକ୍ଷା ଦେଲେ ଯୋଗେଶ୍ୱର,
ହେଉ ଅଛି ଜଣା ସେ ତ୍ୟାଗ ପ୍ରେରଣା
ଦଳେ, ବଳୀ କୃଷ୍ଣଚନ୍ଦ୍ର' । ୨୦ ।

ବ୍ରହ୍ମପୁର ବାସୀ ମହାନନ୍ଦରୂପେ
ଗ ଅଗ୍ନି ଭୂପନ୍ଦ ଭୁଣ,
"ଯାଉ ଗୋଟି ଜନ୍ମ ଶଃ ତବ କର୍ମେ
ସୁଝି ପାରବୁଙ୍କ ରୁଣ ? " । ୨୧ ।

ନେଉଛୁ ମେଲାଣି ନୃପ କୁଳ ମଣି !
ଯିବ ବାଟଏ ଜଗତେ,
ମାଏ ତବ ଉକ୍ତି, ତ୍ୟାଗ, ସଜ୍ଜନଙ୍କୁ
ଆଦର୍ଶ ହେବ ଅଗ୍ରତେ । ୨୨ ।



ଇତି । ବଶଂବଦ

ପାରଳାଖେମଣ୍ଡି } ଶ୍ରୀଯୁକ୍ତ ଚରଣେର
୧-୧୨-୩୪ } ଶ୍ରୀ ରାମକୃଷ୍ଣପାଠୀ ।

# ନାମକରଣ ।



୧୯୨୯ ମସୀହାରେ ପାରଳା ଗୃହବାଟୀରେ ଦେଶମିଶ୍ରଣ ପ୍ରସ୍ତାବ ସମ୍ବନ୍ଧରେ ଆଲୋଚିତ ହେବାବେଳେ, ଯେ ତାତ୍କାଳୀନ ସ୍ୱଦେଶ ବତ୍ସଳ ରଜାଭ୍ରାତା ବାପୁଙ୍କ ସମ୍ମୁଖରେ ଉକ୍ତ ପ୍ରସ୍ତାବ ସମର୍ଥନପାଇଁ ତୀବ୍ରଭାବରେ ମତ ପ୍ରକାଶ କରିଥିଲେ, ମୋର ସେହି ଦେଶ ପ୍ରାଣ ଜ୍ୟେଷ୍ଠ ସହୋଦର ସ୍ୱର୍ଗୀୟ ଶ୍ରୀ ହୃଦୟାନନ୍ଦ ପାଢୀଙ୍କ ନାମାନୁସାରେ ଏହି ପୁସ୍ତିକାଟିର ନାମ 'ହୃଦୟାନନ୍ଦ' ରଖାଗଲା ।

ଇତି । ଲେଖକ ।